# ହାଲ ଫେସନ ।



ଗ୍ରନ୍ଥକର୍ତ୍ତ୍ରୀ

ଓ

ପ୍ରକାଶକ

ଶ୍ରୀ ଲକ୍ଷ୍ମୀ ।

ପ୍ରଥମ ସଂସ୍କରଣ ।

**Printed by V. Kar.**
THE UTKAL SAHITYA PRESS,
**CUTTACK.**
**1925.**

ମୂଲ୍ୟ ଠ ୦ ୵

# ଉତ୍ସର୍ଗପତ୍ରମିଦଂ ।



## ପହିଲ ଧୂପ ।

ରକ୍ତଜବା ଜିଣି ସୁମଧୁର ରଙ୍ଗ,
ପୂତସଲିଳ ବଳ ସୁରଧୁନୀ ଗଙ୍ଗା;
ତର ତର ଢଳ ଢଳ ଲହରୀ ବିଭଙ୍ଗା,
ପ୍ରଣମେ ଚରଣେ ସୁରେ ! ବଡ଼ଲୋକ ଢଙ୍ଗା ।
ବଡ଼ଯତ୍ନଧାରିଣି ଦୋରୂଷ୍ଟ ପିଣ୍ଡ,
କାଳୀକରାଳନ ତ୍ରିଭୁବନନନ୍ଦ,
ବଳଦନମ୍ବନ ଗୋ ! ଦାଣ୍ଡିଆ ହସ୍ତେ,
ଛତ୍ର ରଙ୍ଗିଣି ଦେବ ନମସ୍ତେ ।

# ହାଲଫେଂସନ ।

## ସଞ୍ଜ ପହର ।

ଗୁଡ୍‌ମର୍ଣ୍ଣିଂ ଗୁଡ୍‌ମର୍ଣ୍ଣିଂ ଅନାଦ୍ୟ ଅନନ୍ତ,
ନମସ୍ତେ କଳାମୂରତି ବଡ଼ ବଡ଼ ଦାନ୍ତ ।
ନମସ୍ତେ ତୁମ୍ଭର ବୁଦ୍ଧି, ପ୍ରତିଭାନରସ୍ତୁ,
ଇଚ୍ଛା ମୋର, ପ୍ରଭୁ ତୁମ୍ଭେ, ଦେବ ପରଚନ୍ଦ୍ର ।
କେ ତୁମ୍ଭେ, ବାହ୍ନୁଁ ଅଖିଳ ଅଜ୍ଞାତ ସମସ୍ତ,
ଜନ୍ମ ତୁମ୍ଭ ଅଠେକଣା ଏଥୁଁ ଜାତି ଗୋତ୍ର ।
ଅଣ୍ଡୁ କୁଡ଼ା ତୁମ୍ଭେ ପ୍ରଭୁ ! ଦୁଇଟି ଧରଣୀ,
ଦାଣ୍ଡଦ୍ୱାରେ ବୁଲୁଥାନ୍ତି ଲଜ୍ଜାନିବାରଣୀ ।
ବନାମାତ୍ରେ କାହାକୁ ତ ଦଅ ନାହିଁ ବର,
ଖଣ୍ଡିଆ ମାଦଳ ମୂର୍ତ୍ତି ଦେଖି ଲାଗେ ଡର ।
ପୂର୍ବେ କେବେ ଥିଲ ପରା ଓଁକାର ସଙ୍କାଶ,
ବଡ଼ ଗର୍ବେ ଅଙ୍ଗ ଜୁଣ୍ଡି ହେଲଣି ଅବଶ ।
ନମସ୍ତେ ନମସ୍ତେ ତୁମ୍ଭେ ଦେବ ଚନ୍ଦ୍ରାମଣୋ,
ତନ୍ତ୍ର ବୁଦ୍ଧି ଦେବ ତୁମ୍ଭେ ଭାଣ୍ଡ ମଣେ ଖଣେ ।
ଅସମ୍ଭବ ତୁମ୍ଭ ଗୁଣ କେ ପାରିବ ବର୍ଣ୍ଣି,
ଶ୍ରେଷ୍ଠ ଜାଲ ଜାଳନ୍ଧର ଅସୁର ଧରଣୀ ।

ନୂଆଳ ତୁମ୍ଭ ଜୀବନ, ମିଛ ତୁମ୍ଭ ବୃତ୍ତି,
ଗୁମାସ୍ତାଗିରିରେ ତୁମ୍ଭ ସମ କେ ନାହାନ୍ତି ।
କୂଟ କରି କଲ ତୁମ୍ଭେ କୁରୁକୁଳ ଧ୍ୱଂସ,
ମାମୁଁ ମାମୁଁ ବୋଲି ଡାକି ମାରିଦେଲ କଂସ ।
ଗୋପୀଙ୍କ ସଙ୍ଗୀତୁ ନେଲ ବଇଁଶୀ ବଜାଇ,
ସୁପତ ପ୍ରୀତିରେ ଦେଲ ମାଇଁଙ୍କୁ ମଜାଇ ।
ରୁକ୍ମିଣୀ ହୋଇଲେ ତୁମ୍ଭେ କୃଷ୍ଣ ଛିଦ୍ର ଖୋଜ,
ଆଶ୍ଚର୍ଯ୍ୟ ମଣେ ମୁଁ ଦେଖି ତୁମ୍ଭ ବାଳ ଓଜ ।
ତେଣୁ ପ୍ରଭୁ ତୁମ୍ଭ ପଦେ ପ୍ରଥମେ ଓଳଗି,
ଧୋତି ଫେସନ ଯେଣେ ଚଳେ ଆଗ ପଛ ଲାଗି



ଛଇଳି ବସାରେ ଭାଇ ସାନ ବଡ଼ କିସ ?
ଟଙ୍କା ଜନମ ଯାଇ ତାର ହାତେ ନିଶ ।
କିଏ କହେ କାମୁଡ଼ାଟା ନୁହେ ତାଙ୍କ ଗୁଣ ?
ମନୁଷ୍ୟ ତ ନାହିଁ ମାରେ ଖାଉ ଖାଉ ଲୁଣ ।
ନୁହନ୍ତି ସେ ଆମ ବାପ ଜମିଦାରୀ ପ୍ରଜା,
ଧରି ଆଣି ହୁଙ୍କା ପିଠା ଚଢ଼ାଇବୁ ସଜା ।



ପଣ୍ଡିରବ ଗୋଟେ' କିଆ ତିଡ଼ି ନାହିଁ ଭାଇ,
ସନ୍ତୋଷ କି ହୁଅ ତୁମ୍ଭେ ଖାଲି ଅଣ୍ଡା ଖାଇ ?
ଅଣ୍ଡା ଘିଅ ପଙ୍କା ମାଲ ଦେଲେ ଦଲାଦଲି,
ମଣ୍ଡକନ ଟିଣ୍ଡିଜଳା ଖୋଜି ଯାଏ ଗଳି ।

ଖାଲି ଫୁଲ ରଙ୍ଗରେ କି ଦିଲ୍ ଖୁସି ଅସେ ?
ଭଲ ଲାଗେ ସଙ୍ଗେ ଯେବେ ତା, ସେଣ୍ଟ୍‌ଟା ମିଶେ ।
ମିଶାମିଶି ଜନମକୁ ଦେବେ କାହିଁ ଛଡ଼ି ?
ଗାନ୍ଧିଙ୍କ ସେ, ଦେଖି କାହିଁ ମ୍ଳେଚ୍ଛେ ମୁହଁ ମୋଡ଼ି ?
ଦୋରସା ମାଛରେ ଯେଉଁ ହୁଏ ସିନା ଭଲ,
ଦହି ଚୁଡ଼ା ନ ମିଳିଲେ କି ତୁଣ୍ଡ ବହେ ଲାଳ ?
ପାଣ୍ଡୁ ପୁଏ ଏହି ଢଙ୍ଗେ ଜନମ ହୋଇଲେ,
ବୀରତ୍ୱ ପଣରେ ପୁଣି ଦେବଙ୍କୁ ମୋହିଲେ ।
ବଇରାଗୀ ବଇଷ୍ଣବ ଦେଖି କେ ଆଦର,
ନ କରୁଚ କହ ଭଲା, ଧର୍ମ ଭସ୍ମ ଯାଉ ?
ଜନମ ହୋଇବ ଭାଇ, ଯେମିତି ସେମିତି,
ବଇଷମ କୁଲେ ଯାଅ ସବୁ ଯିବ କଟି ।
ଫିରଙ୍ଗି ଦେଲାଣି ରେଲ ଗୃହଆଡ଼େ କଟି,
ରେଲ ଚଢି ଦଣ୍ଡକରେ ଉଡ଼ିଯାଅ ପୁରୀ ।
ଡୋର କଉପୁନୀ ନଅ, ବାନ୍ଧ ବେକେ ମାଳି,
ଚୈଠେ ଚୈଠେ ହାଙ୍କ ପେଟେ ଖେଚଡ଼ିର ଥାଳି ।
ମଠବାଡ଼ି, ଗୁରୁପଣ୍ଡା ନାହିଁ ତ ଅଭାବ !
'ମାଳା' ଗୋଟିକେଟେ ଖୋଞ୍ଜ ଲଗା! କୃଷ୍ଣଭାବ ।
ସୀତାରାମ, ସୀତାରାମ, ଫୁର୍ତ୍ତି ଫୁର୍ତ୍ତି ରାମ,
ଖଲାସ୍ କଷ୍ଟରୁ ଏବେ କର ନିତ୍ୟ କାମ ।
ଦେଶକୁ ଫେରିଲେ ଧର 'ବଇରାଗୀ' ନାମ,
'ବାବା' 'ବାବା' ବୋଲି ଲୋକେ କରିବେ ପ୍ରଣାମ ।

ଢେର ମୂଲ ଥୋଡ଼ାକେତେ ତାଡ଼ଥିବ ବାକୀ,
ରୋଗ ଦେଖି ଜଡ଼ିବୁଟି ଔଷଧ ପାଇଁ କି ।
ଏକା ପାଉଁସରେ ହେବ ସବୁ ରୋଗ ଧ୍ୱଂସ,
ଜର, ଝାଡ଼ା, ପେଟବଥା, ଗନୋରିୟା, କାଶ ।
ଆଉ ତେବେ ବୋପା ନାମ କିଏ ବା ଖୋଜିବ,
ଥୋଡ଼ା ଦିନେ ପକାଧରି ମହଲ ସାଜିବ ।
'ଅଣବାବୁ', 'ବାବୁ'ରେ ବା ବେଶୀ କି ଫରକ ?
ପଛ 'ଅଣ'ଟା କାଟି ଦେଲେ 'ବାବୁ' ହେଲା ଦେଶ !
ମଣିଷ ନ କହି ତାଙ୍କୁ ଗୋରୁ କି କହିବୁ ?
ବିଶ୍ୱାସ ନ ଗଲେ ଭାଇ ଦୌଡ଼ି ଆ ଦେଖିବୁ !
ଆମ ଏଠି ଯେତେ ସବୁ ଥିଲେ ଅଣ-ବାବୁ,
'ଅଣ' କାଟି ଲାଞ୍ଜକଟା 'ବୈଷ୍ଣବ' ବା 'ବାବୁ' ।



ବ୍ରାହ୍ମଣ ନନାଙ୍କ ଆମ ଧରମରକ୍ଷକ,
ଦେଶ ଲାଗି ପକେଇଲେଣି ଦାଢ଼ି ନଖ ଯାକ ।
ଦାଢ଼ି, ନଖ, ଦେଖି ହିନା ଡରୁଥିଲୁ ବାବୁ,
ଲମ୍ବା ଗୌଡ଼ା ଚଣ୍ଡା ନାହିଁ ଚମକି ଉଠିବୁ !
ମାଖୁନା ମୁହଁ ବି ନୁହେ ମାଦ ଭୁ ମଣିବୁ,
ଆଉ ଟେଟାଭ ଡର କାହିଁକି ? ଗଲାଣିମ ସବୁ ।
ଖାଲି ନଖ ଚଙ୍ଗ୍ କରି ମାରି ଦିଅ ହାତ,
ନନା ଆମର ଠାକୁରଙ୍କୁ ମାରିଲେଣି ନାତ ।

ଆପଣଙ୍କର ନନା ଆଉ ଅଜାତ ଦେଖିଲେ
ଛଡ଼ିବେ ବା କିଆଁ ? ଜଣେ ଯେ ତ ଫ୍ରେଣ୍ଡ୍ ହେଲେ ।



ପତ୍ରିକାରେ ଏବେ ଦିନେ ନୋଟିସ୍ ଦେଖିଛି ଭାଇ,
ତୁମ ବାଣ, ତୁମ ମାଂଗ୍ଣ ନିଛୁ କନ୍ୟା ନାଇଁ ।
କାହାର ପଡ଼ିଛି ଜଣେ ପୁରୋହିତ ଲୋଡ଼ା,
କ୍ୱାଲିଫିକେଶନ ତାର ଥିବ ଖୁବ୍ ଥୋଡ଼ା ।
ଇଂରାଜିରେ ତାଙ୍କ ଜ୍ଞାନ ଥିବ କିଛି ବାକୀ,
ଆଇ. ଏ. ପ୍ରିଫରେବଲ (ନୋଇଲେ) ନିତାନ୍ତ ମାଷ୍ଟ୍ରକ୍ ।
ପାହ୍ଡ଼ା କାଣ୍ଡିଡେଟ ଗୃହୀ ବୟସ ଅଠର,
ଇଂରାଜିରେ ବାପାଙ୍କର ଶ୍ରାଦ୍ଧ ଦେବ ମୋର ।

'ଗୁଡ୍ ମର୍ଣ୍ଣିଂ' ନ କହିଲେ ବାପା ନ ବୁଝନ୍ତି,
ସ୍ୱର୍ଗ ଯିବ ସତ ତେବେ ବାପା ବା କାହାନ୍ତି ?
କାଳ ତ ଚଳୁଚି ଏବେ ଫିରଙ୍ଗୀ ଭାଷାରେ,
ନ ଆସନ୍ତି ଡାକିଲେ ସେ ଭେଡଲ୍ୟାଙ୍ଗୁଏଜରେ ।
ପୁରୋହିତଙ୍କର ପକ୍ଷେ ବ୍ରାଣ୍ଡି ଠା ନ ଚଳୁ,
ଅନ୍ତତଃ ସେ ଜାଣିଥିବେ ମଦ କର 'ଚଳୁ' ।
ମନ୍ତ୍ର ସ୍ତୋତ୍ର ପଢିବେ ସେ ସବୁ ଇଙ୍ଗ୍ରାଜିରେ,
ପିଣ୍ଡ ଦେବ ରୁଟି, ବିସ୍କୁଟ ସଉଡ଼ମ୍ ଭାଜିରେ ।
ଯେ ଅକଡ଼ିଙ୍ଗ୍ ଟୁ କ୍ୱାଲିଫିକେଶନ୍ ପୁରୋହିତଙ୍କର
ଆପ୍ଲାଇ ଟୁ ପୋଷ୍ଟ ବକ୍ସ ନମ୍ବର ସତର ।



ମିଙ୍କର ନନା ! ପଲା କାହିଁ କଥାଏ ଯା କହ,
ବହୁତ ଦିନୁ ସନ୍ଦେହଟେ ରହୁ ଯାଏ ଭାଇ !
ଧାତୁକୋଷ, ଶବ୍ଦକୋଷ ଯେତେ ଅଛୁ ହୋଇ,
ଦେଖିଲୁ ଦେଖିଲୁ ତାର ପୁଡ଼ା ନେଉଠାଇ,
ଧାନକ୍ଷେତେ ଉଠେ ଗୁଡ଼େ ବାଲୁଙ୍ଗା ତ ଜାଣ,
ତାକୁ ବୁଣି କସ ଉଠେ କହିଲୁ ତା ନାମ ?



ଅଙ୍କୋସ୍କି-ମୁଲକେ ଜଣେ ହାଲ ସରଦାର,
ଅଳୁ, ମୂଳା, କଚୁ , ମକା କରି କେତେ ଭାର,
ବେଲ, କାଲ, ହଳ ଦେଖି ରାଜ ଦରଶନେ,
ଚପୁରୁଷଙ୍କ ପିଣ୍ଡ ଦେଇ ବାହାରିଲା ହନେ ।
ଁଯାକ ସଭା କରି ଅଡ୍ରେସ୍‌ଟାଏ ଦେଲେ,
ହାଲ୍ ଫେଶନ୍ ଫାର୍ଶ ପରି ସର୍ଦାରଙ୍କୁ ଠେକଲେ ।
ଗଣ୍ଡି ଭଲ, ମୁଣ୍ଡ ଭଲ ତୁମେ ସରଦାର
ତମ ପରି କାହିଁ ନ ଥିବ ଜନପୁର ଭିତର ।
ଶଙ୍ଖ ଫୁଙ୍କି ସରଦାର ଶୁଭେ ବାହାରିଲେ,
ଚଳୁ ଉଠି ଉଠି ରାଜ ସ୍ତମ୍ଭରେ ମିଳିଲେ ।
ନାକଠାରୁ ମୁଣ୍ଡଯାଏ ବହିଲେ ପ୍ରଣାମ,
ଗୋଡ଼ଠାରୁ ଚୁଟିଯାଏ କଲେ ଦରଶନ ।
ଟଜାଙ୍କର ସବୁ ଭଲ (ଖାଲି) ବାମ ଶ୍ରୀପଯୁର,
ହାତେ ଉଚ ଟଗୋଦର ସେ ପାହାଡ଼ ଆକାର ।

ବିଦା ହୋଇ ସରଦାରେ ଗ୍ରାମରେ ମିଳିଲେ,
ସଭା କରି ଗାଁ ଲୋକଙ୍କୁ ସକଳ କହିଲେ ।
ସମସ୍ତେ ତ ପଚାରିଲେ ରଜା କେତେ ବଡ଼,
ରୂପ ବର୍ଣ୍ଣି ଗଲେ ସର୍ଦାର ଆଖି, କାନ, ଥୋଡ଼ି ।
ହାୟ, ହାୟ, ଗୋଡ଼ କଥାଟି ପଡ଼ିଗଲା ମନେ,
ସନ୍ଦେହ ଅଛି ସରଦାରେ କହିଲେ ଚତୁର ଛନ୍ଦେ ।

କେହି ଆଉ କାରଣଟା କହି ନ ପାରିଲେ.
ଖୁଁ ଖୋସୁଅ ଚନ୍ଦ୍ରପଣ୍ଡିତେ ଏକାଳେ ମିଳିଲେ ।
ପଣ୍ଡିତଙ୍କୁ ଦେଖି ସଭା କଲେ ସତ୍କାର,
ଦୋକ୍ସା ଦେଇ ବସାଇଲେ ଆସନ ଉପର ।
ପ୍ରଶ୍ନ କଲେ ସରଦାର ହେ ଚନ୍ଦ୍ରପଣ୍ଡିତ !
'ଦେଖି ଅଇଲି ମୁଁ ଏକ ମସ୍ତ ଅଚମ୍ଭିତ ।
ରଜାର ତ ସବୁ ଠା'ନ୍ତି ଆମ ପରି ସମାନ,
ବାଁ ଗୋଡ଼ଟା ବଡ଼ କାହିଁକି କହ ତା କାରଣ ?
ଭାବି ଭାବି ଚନ୍ଦ୍ରପଣ୍ଡିତେ ତିନି ଘଣ୍ଟା ପରେ,
ହସି କହିଲେ 'ଶୁଣ, କାରଣ ମନେ ପଡ଼େ ମୋର ।
ଏ କଥାଟା ଜାଣ ନାହିଁ ରଜା ରାଜ୍ୟର ବଡ଼ ?
ସେଇଥିଲାଗି ମୋଟେଇ ଅଟେ ତଳ ଆଉ ଗୋଡ଼
ନୋହିଲେ ତ ତୁମେ ମୁଁ ସମସ୍ତେ ସମାନ,
ସମାନ ସମାନ ଯେବେ ଥାନ୍ତା ନାକ କାନ ।
ବଡ଼ଲୋକ ଯେଣୁ ସବୁ ବଡ଼ ହେବା ଗୃହି,
କୋଠା ବାଡି ବଡ଼ ବଡ଼ ଦେଖିଲ କି ନାହିଁ ?

‘ଗୋଡ଼ ବଡ଼’ ସେତିକି ତ ଶ୍ରୀଅଙ୍ଗର ଚିହ୍ନ,
ଗୋଟେ କିଛି ବଡ଼ ଥିବା ରଜାର ଲକ୍ଷଣ ।
ନୋହିଲେ ତ ଦଇବର ଭୁଲ୍ ହୋଇଥାନ୍ତା,
ରଜା ବଡ଼ଲୋକ ବୋଲି କେ କଥାଁ କହନ୍ତା ?
ତଥ୍ୟ ପାଇ ଏତେବେଳେ ଆନନ୍ଦ ସମସ୍ତେ,
ଧନ୍ୟ ହେ ତନ୍ତ୍ରପଣ୍ଡିତେ ! ନମସ୍ତେ, ନମସ୍ତେ ।



ହାଲି ଦରବାରେ ଯେବେ ମିଲନ୍ତି ସାହେବ,
ସଲାମୀ ସ୍ୱରୂପେ ତାଙ୍କ ‘ଡାଲି’ ବୃଥା ହେବ ।
ରାଜ ଦରଶନ ନୁହେ ‘ଭେଟି’ ନ ବାଟିଲେ,
ବଡ଼େ ବଡ଼େ ଏ ଭିଆଣ ସବୁ କରିଗଲେ ।
ପାଞ୍ଚ ଟଙ୍କାରେ ମୁଣ୍ଡ ବିକି କିରାଣୀ ବାପୁଡ଼ା,
ଖାଇବାକୁ ନ’ପରାଣୀ ହ’ନ୍ ଟଙ୍କେ ଲୋଡ଼ା ।
ଖାଇଛି ସେ ପ୍ରଜା ଠାରୁ କୋଶଲାରୁ କେତେ
‘ଘୁଷ୍’ ତେବେ ନ ହେବ ତା, କହ କି ପ୍ରକାରେ !
‘ଡ଼ାଲି’, ‘ଭେଟି’, ‘ଅଣ୍ଟାଗୁଞ୍ଜା’ ଏକ ତ ଜିନିସ,
‘ଘୁଷ୍’ ବୋଲି କୌଠି ତେବେ ଫରକ ବେଶୀ କିସ ?
ପାପଦ୍ରବ୍ୟ ବେଶୀ ହେଲେ ପୁଣ୍ୟ ନାମ ଧରେ,
ଉଠିଯାଅ ଯେତେ ପାପୀ ସ୍ୱର୍ଗ ପାହାଚରେ ।
ମଦ ଢାଳି ଢାଳି ପିଇଲେ ରଜା ଦେଲେ ତାଳ,
‘ଗଳ୍ପ’ କଲା ଗୃହର ଯେବେ ସେ ଶଳା ‘ମାତାଲ୍’ ।

ରଜାଙ୍କ ହସ୍ତରେ ଦୋଷୀ କରାନ୍ତି ଖାଲି;
'ଗଣିବ ମାଇପ ସିନା ଦୁନିଆର ଶାଳୀ ।'



ଶିଷ୍ୟ ପଚାରନ୍ତି 'ଗୁରୁ ! ଶଳା କାହାକୁ କହି' ?
ଗୁରୁ ବୋଲେ ଘର କଥାଟା ତୁ କ ଜାଣୁନାହିଁ !
ଧର୍ମଶାସ୍ତ୍ର କହେ ଶଳା 'ଘରଣୀର ଭାଇ'
ପୁଅଝିଅର ମାମୁଁଙ୍କୁ ବି ଶଳା ବୋଲି କହି ।
ଆପଣାର ଯେଟି ଶଳା ତାକୁ କହି ଶଳା,
ଶିଷ୍ୟ କହେ 'ଏ ସବୁ ତ ପୂର୍ବକଥା ଗଳ୍ପ ।'
ଏ ଯୁଗରେ ହାଲ୍ ଫେସନ ଶଳା କଏ କଏ ?
ଗୁରୁ ବୋଲେ 'ଭାଇଠୁଁ ବଳି ସ୍ନେହ ପାଏ ଯିଏ ।

ଆଗେ ଶିଷ୍ୟେ ହେଉଥିଲେ ଗୁରୁଙ୍କ ନନ୍ଦନ,
ଆଜି କାଲିକା ସମ୍ପର୍କଟା ହୋଇଛି ନୂତନ ।
ମିଛ ନୁହେଁ, ଆମ ଏଠି କେତେଠେଁ ଚଳେ,
ଶିଷ୍ୟ ତୁ ତ ତୋତେ ସତ ନ କହି ନ ଚଳେ ।
ଗୁରୁ ପାଶେ କେହି ଯେବେ ଶିଷ୍ୟ ପଣ କଲା,
ନିଜ ପୁଅ ହେଲେ ବି ସେ ଗୁରୁଙ୍କର ଶଳା ।

ବଡ଼ ପାଠୁଆ ପାଇଲେ ସହର ଗାଁକର,
ଶାନ୍ତି ରକ୍ଷି ଶଳା ନାମ କହିଲେ ଉଚ୍ଚାର ।
ମଥାପାଗ ସନ୍ତ୍ରକର ଗୁଣ ଅଛି ଯେତେ,
ଗୋଷ୍ଠି ଗୋଠି କର ଆଉ ବଢେଇବ କେତେ ?

ରାଜ୍ୟପାଳ ତାଙ୍କ ଶଳା ସେ ନୁହେଁ କାହାର,
ତାଙ୍କର ଭଗିନୀ ହେଲେ ସେ ରହେ ତାଙ୍କର ।
ଧର୍ମ ଅବତାର କେଡେ ଦୁନିଆଁ ହାକିମ,
'ଶାଳକ-ବାତ୍ସଲ୍ୟେ' ପ୍ରଜା ପାଳନ୍ତ ଉତ୍ତମ ।
ଅଜାଠାରୁ ନାତିଯାଏ ଶଳା ତ ତାଙ୍କର,
ପ୍ରଜା ନୃଣକୁ ତ୍ରିଠାରୁ କୋଶଳା କଥାର ।

ବହାଦର ସର୍ଦାରର ନାତି ହୁଏ ଶଳା,
କହିଲୁ ଦେଖି ସେ ସର୍ଦାର କି ଜାତିରେ ଗଣା ?
ଗୁଣଧର ଶିଷ୍ୟ କହେ "ବୁଝିଲି ଏଥର,
ଏ ସର୍ଦାରଙ୍କ ବାପ ଅଜା ମାଙ୍କଡ଼ କୁକୁର !"
ଦୂର୍ ମୂର୍ଖ ବୋଲି ଗୁରୁ ମାରିଲେ ଚୂପଡ଼େ,
"ବଡଲୋକ ସେ ଏ କଥା କହୁ ତୋର ସାହସ କେତେ !"



ବଡ଼ିଆ ଓସ୍ତାଦ ମୁଁ ହେ, ହେଲିଣି ଏଥର,
ଆଉ ଇଙ୍ଗ ହିନ୍ଦ ଲବଜ୍ କଲିଣି ହାସଲ୍ ।
ଡୁମ୍ ଚେର, ନାନା ଚେରେ, ଦ୍ରିମ୍ ଦ୍ରିମ୍ ତାନା,
ସାମା ଗାଧା ଶିଖିଲିଣି ଢେରେ ତାନା ନାନା ।

ଲାଲ୍ ଲିଲି, ଠୋଠା ଠିଠି, ତାନମିଠିକର,
ଦ୍ରାଁ ଦେଦାଗ୍, ଦାଦ୍ରେଦାଗ୍, ଆଦ ଦରଦର ।
ସେହିକ ଯେ ହିନ୍ଦୁସ୍ଥାନୀ ଓସ୍ତାଦ ଦେଖିଛ ନା ?
କିଛି ନୁହେ, କଛି ନୁହେ (ଖାଲି) ଠେପ୍ପାଠୁମ୍ବର ଜଣା !

ତିନି ବରଷ ସା, ରେ, ଗା, ମା, ଗଲସଧା ଭାଇ !
ଗେଲ ପଢ଼ୁଛି ? ଏତେ କଷ୍ଟ, ଅସୂଷ ଥିବା ଗୃହ ।
ତା ପଛରେ ଗୀତ ଶିଖା, ପୁଣି କେମିତି ଓସ୍ତାଦ,
କାର ସାଗେର୍ଦ୍ଦ ମୁଁ ମୋ ସାଙ୍ଗରେ ବାଦ ?
ପଡ଼ଲା ଗଲା, ନରମ ଅବାଜ, ବାଇମାନଙ୍କୁ ସାଜେ,
ମରଦବଶ୍ୱ 'ଗଧଗଲା' ନୋହିଲେ ସେଷ୍ଟା ବାଜେ ।
ଚପି ଚପି ଗଲା ଗାଅ ଦାନ୍ତି ଗୋଷ୍ଠାକେତେ,
ଖିଯ୍ୟାଲ୍ ଟପା ଗ୍ଭରଦଅ "ନାମ ବାଡ଼୍‌ବେ ତାତେ ।"
'ବିଲମ୍ବପଦୀ' ଥୋଡ଼ା ବହୁତ୍ ଶିଖିବ ଏଥର,
ଗୁରୁଦେବଙ୍କୁ ଚଢ଼ା ଦେବ ପନର ସତର ।
ଗ' ଦ' ବୋଲ ଜାଣିଥିବ ଯେ, ଯେ ବାଜୟୀ ଦେଲେ,
କେଜାଣେ ବା ମୋ ସାଙ୍ଗରେ ଠେକା ଦବ ଦେଲେ ।
କୋଷକେ ଗୋଟେ, ପାଅକେ ଗୋଟେ ପଡ଼ୁଥିବ ତାଲ,
ଗୋଟାଏ ଘା ଦେଇ ବାଜୟା ଭୁଣ୍ଡୁଥିବ ଗୁଲ ।
ଘଣ୍ଟେ ପରେ ଅନ୍ଧର ଘାଏ ମାରବ ନଠାଇ,
ସାବାସ୍ ରେ ବଢ଼ ଓସ୍ତାଦ ସାବାସ୍ ରେ ଭାଇ !
ଆଉ ଗୋଟେ କଥା ଭାଇ ! ଓସ୍ତାଦ କାଏଦା—
ଗୋଷ୍ଠାକେତେ ଘୋଷୁଥିବା ଦର୍କାର ସର୍ବଦା ।
ଫାଲେ ଥୋଡ଼ ଠେକା, ପୁଣି ଅଧଅଣ୍ଟିଠର୍ଯ୍ୟ,
ଖେଁ, ଖେଁ, ଖାସ, ଶିରକମ୍ପ, ବାଷ୍ପ୍ ଦୂନଧାର୍ଯ୍ୟ ।
ଆପଣାର ଭୁଲ୍ ମୁଖେ ସ୍ୱୀକାର ନ କରବ,
ଭୁଲ୍ ଗାଇଲେ (ନୂଆ) ଏକ ରାଗିଣୀ କହିବ ।

ଶିଷ୍ୟ ବୋଲେ "ନୂଆ ରାଗ ଆସିବ କେଉଁଠୁ ?"
"ଆରେ ବୁଲୁ ! ଶୁଣ୍ ତେବେ ଶୁଣିଛୁ ଗୁରୁଠୁ ।
(ଦିନେ) ଭୂପାଳୀରେ 'ମ' ଲଗାଇ ଗାଇଲେ ଗୁରୁବର,
ପଚାରିଲେ ସେ ଚଟି କହିଲେ ଏ ରାଗ 'ଲଙ୍କେଶ୍ୱର !'
ସେମିତି ତଟକା ବୁଦ୍ଧି ଥିବା ଟା ଦର୍କାର,
ହିନ୍ଦି ଗୀତ ଗୋଷ୍ଠାକେତେ ଶିଖି ନା ଏଥର ।
ବାକ୍ୟ ଅଡ଼ମ୍ବର ଢଙ୍ଗ ଅଭ୍ୟାସ କରନ୍ତୁ,
ପଣେ ଗାଇସ୍ଥା ହିନ୍ଦୀଇକୁ ବୋଲି ତୁ କହିବୁ ।
କାନ୍ଦୁମିଆଁ, ସୋଲୁମିଆଁ, ବୋକା ଭୁଲ୍ଖାନ୍,
ପ୍ୟାଜେକାନ୍, କ୍ଲେନ୍‌ଜାନ୍, ଗୁଡ଼୍‌ଚନା ଜାନ୍ ।
ଗୋଷ୍ଠାକେତେ ନା ତୋର ମୁହେଁ ମୁହେଁ ଥିବ,
ମଜନ ଚଖ ! ଏଇଟା ତୋର ବଡ କାମ ଦବ ।
'ଓଡ଼ିଆ' ବୋଲି ଗୋଟେ ଭାଷା ଅଛୁ ଓଡ଼ିଶାରେ,
ଖବରଦାର୍ ସେ ଗୀତ ତୁ ନ ଶିଖ ମୁହିଁରେ ।
ପାରୁ ଯେବେ ଥିବୁ ଦୂରେ ନ ଶୁଣିବୁ କାନେ,
ସେଗୁଡ଼ାକ ଠିକ୍ କେବେ ନୁହେ ତାଲେ ମାନେ ।
"ଶିଷ୍ୟ ବୋଲେ ଗୁରୁ ! କପିଁ ଚଳା କି ଆସେ ?"
"ଗୁରୁ ବୋଲେ ଓସ୍ତାଦ୍ ହବା ପୂର୍ବ ଲକ୍ଷଣ ସେ ।"
ଶିଷ୍ୟ ବୋଲେ 'ଅମୁକ ଗାଏ ବଡ଼ ପାତଲା ଗଳା,
ଶୁଣିଲି ସେଦିନ ଗୁରୁ ! ମଧୁର ଲାଗିଲା ।
ଆସର ଭିତରେ ନାମ ଉଠିଲା ତାଙ୍କର,
ସାବାସ୍ ବାହାବା ଖାଲି ଶୁଣେ ବାରବାର ।

ବଡ଼ ମିଠା ଗଳା ସତେ ଗୁରୁଦେବ ! ତାର,
କଳକଣ୍ଠ ପୀକ ଗୀତ ତା ପାଖରେ ଛାର ।'
ଗୁରୁ ବୋଲେ ଶୁଣ ମୋଠୁଁ ଶୁଣ ଆରେ ଉଲୁ,
ଗଳା ମିଠା ନ ହେଲେ କି ଓସ୍ତାଦ୍ ନୋହିଲୁ ।
କାନକୁ ଭଲ ଲାଗୁ ନ ଲାଗୁ ସେଥିକୁ କି ପାଅ,
ରାଗ ଚର୍ଚ୍ଚା ଗୋଟାକେତେ ବହିକଣ୍ଠ ଯାଅ ।
ଗଧ, ଘୋଡ଼ା, ଛେଳି, ମେଣ୍ଢା, ଯେ'ବା ଗଳା ସାଧ,
ରାଗ ରାଗିଣୀ ଗୋଟାକେତେ ଶିଖିଲେ ଓସ୍ତାଦ ।
'ଶିଷ୍ୟ ବୋଲେ ତେବେ ଗୁରୁ ! ମୋତେ ଓସ୍ତାଦ କଏ,
'ଫଟା ଗଳା ହଉ ଧଇଲେ ବଡ଼ପାଟିଆ ଥିଏ ।'
ଗମ୍ଭୀର ତେହେନା ଜାଉ ଥିବା ବି ଦର୍କାର,
ବେଲେ ବେଲେ ଆଖି ମୁଦି ହେବ ଭାବେ ଭୋର ।
'ହଜୁର ମାଲିକ, ହଜୁର ଅଲ୍ଲା, ହଜୁର ଖୋଦା, ବୋଦା,
କି ଅଲ୍ଲା ଯୋ ଖୁସି ହୋ' ଥିବ ଗଳାରେ ସଧା ।
ତେବେ ବାବୁ ଓସ୍ତାଦ ହବୁ ଫଳକୁ ନାଗ,
ଅଟା ନୁହେ, ବଡ଼ କଷ୍ଟ ବନାଭ୍ୟାସେ ହଷ ।



ମସ୍ତ ଏକ ହୁଣ୍ଡା ମୁଁ ହୋ ମଣ ଜାହିଁ ଥଟା,
ଉନ ଉନଟା ମିଶାଇଲେ କହେ ମୁଁ ଛଅଟା ।
ଘରଟାକୁ ଘର କହେ ଗୋରୁଟାକୁ ଗୋରୁ,
ଟମା ଅଛିରେ ଗୁହିଁ କହେ ସାରୁଟାକୁ ସାରୁ ।

ରଜାଙ୍କ ଲାଗି ଏକାଦଶୀ ପୁଅ ବ୍ରାହ୍ମଣ କରେ,
ସେତେ ବଡ଼ ଭାଗ୍ୟ ବାକୀ ନାହିଁ ମୋ କର୍ମରେ ।
ଜାଣି ଶୁଣି 'ଗଛ'ଠାରୁ 'ଗଧ' ନ କହିବ,
ବଡ଼ଘର ଗୃହକର୍ତ୍ତା ନୋହିଲେ ନୋହିବ ।



ଡାକତଖ୍ୱା ବୈଦ୍ୟସାଠା ଏଥର କରବ,
ଲାଇସେନ୍ସ ନେଇ କାମ କରୁଛ, କାହିଁକି ଡରବ ?
ପେଟେଣ୍ଟ ମଲେ ମରୁ ମୋର ଦରମା କଟୁ ନାଇଁ,
ବଡ଼ ହାକମ ଦୋସ୍ତ ମୋର, କେୟାର କାହିଁପାଇଁ ?
ପେଟେଣ୍ଟ ଏକ ମେଡ଼ିସିନ କରଚ ବାହାର,
ଏକା ଔଷଧରେ ମିଳେ ସବୁ ଉପକାର ।
ପୁଅ ହବ ଝିଅ ହବ ଗୃହଲକ୍ଷ୍ମୀ ମିଳବ
ମୁଣ୍ଡରେ ଚଢା ଘେନଲେ ରଜା ବଶ ହେବ ।
ଶତ୍ରୁ ନାମେ ପାଇ ଦେଲେ ଶତ୍ରୁ ହେବ ନାଶ,
ପରୀକ୍ଷା ପ୍ରାର୍ଥନା କରେଁ, ଅସଲ ବିଶ୍ୱାସ ।
ଫଳ ଯେବେ ନ ପାଇବ ଦାମ ଦେବୁ ଫେର,
ଚଠକା ଅଡ଼ର ଦିଅ, ପଛେ ହେବ ଘାର ।



ବେକେ ବଡ଼ ଢେଗାମାଳ, ନାକେ ରସକଳି,
ଝୁଲୀ ମୁଣି, ସରୁ ତିଳକ, ହରି, ନେଳି, ନାଲି ।
ମାଳା ଜପି ଭାବୁଥିବ ସୁଧକଷା କାମ,
ଛଦାମେ ହୁଡଲେ ମୁଖେ ରାମ୍ ରାମ୍ ନାମ ।

ପଣ୍ଡଶା ଘର ମିଶିଗଲେ ଲମ୍ବ ଘର ହବ,
ଆଣ୍ଠୁକୁଡ଼ା ଦାସବୁଢ଼ାକୁ ଯମ କେବେ ନବ ?
ଭିଖାରି ନ ଗଲେ ହାଟିକୁ କେବେ ନ ଖାଇବ,
ନିତାନ୍ତ ଅସହ୍ୟ ହେଲେ 'ଠେଙ୍ଗାଧାରି' ହେବ ।
ମିଠାକଥା କହି ସବୁବେଳେ 'ବାବା' 'ବାବା,'
'ଦେ' ଯାଗାରେ 'ନେ' ବସାଇ ପାଖରେ ଦେବ 'ବା' ।
ଜୀବନଟି ରଖିଥିବ ଦୀନବନ୍ଧୁ କ୍ଷମା,
ଯିବା ନାହିଁ ଜାଣ ଭାଇ ! "ଗୌରାଙ୍ଗ ମହିମା ।"



ହେ ! ହେ ! ବଡ଼ି ଚାଟକା କଥା ଦେଖିଲ ରେ ଭାଇ !
ହାତୀଟାଏ ବୁଲୁଥିଲା ବଣ ଗୁଳ୍ମ ଯାଇ ।
ଲୁଖା ଏକ କହେ ବନେ ହାତୀର ଦୁର୍ଗୁଣ,
ବଢ଼ିଥିଲା ହାତୀଘରେ ଖାଇ ତା'ର ନୁଣ ।
ହାତୀ ଆସି ପହୁଞ୍ଚିବା ବେଳ ଯେବେ ହେଲା,
ପହିଲି ପ୍ରଥମେ ଲୁଖା, ସଲାମ୍ ଠୁକିଲା ।
କହେ ଲୁଖା କାନ୍ଦି କାନ୍ଦି ବାହୁନି ବାହୁନି,
'ଏତେ ଦିନ କାହିଁଥିଲ ? ହେ କରୀନ୍ଦ୍ରମଣି !

ତୁମ୍ଭ ବନ୍ଧନରେ ଅଧେ ଗଲିଣି ମୁଁ ଝିଡ଼ି,
ଆଉ ଓଳିକରେ ଦେହ ପଡ଼ିଥାନ୍ତା ଠିଳି ।
ଶତ୍ରୁ ହୋଇ କେତେ ତୁମ୍ଭ ଦୁର୍ଗୁଣ କହନ୍ତି;
କି କହିବ ତୁମ୍ଭେ ନ ଥିଲ, ମୁଁ କି ତା' ସହନ୍ତି ?'

ତୁମ୍ଭ ଖାଇ ହାତୀ ତାକୁ ସମାଦର କଲ,
ସ୍ୱାଦୁ ବଳ ତାଠକା କଥା, କେ ଦେଖିଛ ଭଲ ?



ସାତପୁରୁଷି ଖଣ୍ଡ ଏକ ସଦଣ୍ଡାନ ପାଇଁ,
ପୁଅକୁ ତା'ର ଛାଡିଦେଲା ମାମୁଁଘରେ ଯାଇ ।
ଘରେ ଥିଲେ ବାପଠାରୁ ଦୁର୍ଗୁଣ ଶିଖିବ,
ପିଲାଦିନୁ ତେଣେ ଥିଲେ ମଦ୍ଧକ୍ଷ ବାସିବ ।
ଯାନ୍ତି ନ ଫେରୁଣୁ ପୁଅ ଗଲା ମାମୁଁଘର,
ବାର ବରଷରେ ବାପ ଭେଟିଲା ତାହାର ।
ଆସିଲା ଘରକୁ ପୁଅ, ଅତି ଆଦରରେ—
ପଥେ ପିତା ଭାବେ ବସି ଦେଖିବ ମୁଁ ଥରେ ।
ମୋ ପୁଅଟି ମୋ ପରି ତ ନୁହେ ଅତି ଖଣ୍ଡ,
ପାଖ ମିଳେ ବାପ କହେ "ପ୍ରଳୟ ନିକଟ ।
ଦେଖିଲୁଣି ରେ ଗିର ! ଆସେ ହେଉଟି ନଈ ମାଡ଼ି,
କାହିଁ ପଳେଇବା କହ ଜୀବ ଯାଏ ଛାଡ଼ି ।"
ପୁଅ କହେ "ହଁ ଗୋ ବାପା, ଶୁଭେ ଗରଜନ,
ଦେଖୁନାହିଁ ଝିଙ୍କରେ ମୋର ଲାଗିଛି କେତେ ଫେଣ ।"
କାଉକୁଆ ଶୁଆ ହେଲେ ପୃଥ୍ୱୀ କି ରହିବ ?
ଚଉଦ ପୁରୁଷ ଗଲେ ଗୋଡ଼ ସୁମରିବ ।



ଖୁସାମତ ଠା ଦୋଷାବହ କୋଉ ମର୍ଣ୍ଣ କହେ ?
ଏହା ଶୁଣି ବସୁନ୍ଧରା କେମନ୍ତ ସତେ ସହେ ?

ପୂର୍ବରୁ ଯେ ତନ୍ତ୍ର ମନ୍ତ୍ର ରହିଅଛି ଜାଗି,
ସେ ସବୁ ତ ଦେବତାଙ୍କୁ ଖୁସାମଦ ଲାଗି ।
ବଡ଼ରୁ ତ ସାନଯାଏ କର ଖୁସାମଦ,
(ତେବେ) ନନାଙ୍କର କି ମୁହଁରେ କାଠମୁହଁ ନୁହଁ ତ ?



ବୁଦ୍ଧି ବଢ଼ିବାର ଭାଇ କହିବ ଇଲମ,
ଘରେ ବସି ବଢ଼ିଯିବ କର ଗୋଟେ କାମ ।
ଶିବପୂଜା ନାମ କର ଘୋଟି ପିଅ ଭାଙ୍ଗ,
ଅଖିଯାକ ଦିନରାତି କରିଦିଅ ରଙ୍ଗ ।
ସିଦ୍ଧ ହେବ ଦେବ କାର୍ଯ୍ୟ, ଦୁର୍ନାମ ଶିବର,
ପ୍ରସାଦ ତ ନ ପାଇଲେ ହାନି ଧରମର ।
କାଳୀ ପୂଜା କର, ପିଅ ମା'ଙ୍କ ପ୍ରସାଦ,
ଅର୍ଥାତ୍ ସିଧା କଥାରେ ସେବାକର ମଦ ।

ଖୁବ୍ ହବ ବୁଦ୍ଧିବଳ ଆୟୁଷ ବଢ଼ିବ,
ମଦଖିଆ ଦୁର୍ନାମଟା କାଳୀ ନାମେ ଯିବ ।
ଯୋଡ଼ା ଗଞ୍ଜେଇର ଗୁଣ ! ଅପାର ମହିମା,
ଛୁଇଁ ନ ପାରିବ ତାଙ୍କୁ କଳିକାଳ ସୀମା ।
ତ୍ରିନାଥମେଳା ତ ଏବେ ଘରେ ଘରେ ପୂଜା,
ଗଞ୍ଜା ଉଡ଼ ଲାଗ ଅଖିରେ ବନିଯାଅ ରଜା ।
ଗଞ୍ଜାର ଦୁର୍ନାମୁଁ ପାର ତ୍ରିନାଥ ନାମରେ,
ହରେକୃଷ୍ଣ, ହରେକୃଷ୍ଣ, ହରେରାମ, ହରେ ।

ବାକି ରହିଗଲା ଭାଇ ! ଅଫିମାଙ୍କ ଦଶା,
ସେ କି ଦୋଷେ ଦୋଷୀ ? ତାଙ୍କ ନ ପୂରିଲା ଆଶା ।
କେହି ହେଲେ ଦେବତା ବି ସପନାନ୍ତିଁ ନାହିଁ,
କାହା ପୂଜା କଲେ ତାଙ୍କ ଦୁର୍ନାମଟା ଯାଇ—
ଗୁଲା ଅଫିମର ସତେ ମହିମା ବଢ଼ନ୍ତା,
ଅଫିମାଙ୍କ ଘରେ ଘରେ ହରିବୋଲ ପଡ଼ନ୍ତା ।



ସିଭିଲାଇଜ୍ଡ ଦୁନିଆଁରେ କେମିତି ହବ ଜାଣ ?
"ଦେଶପାଇଁ କମର କଷି କର ମୁହେଁ ଠାଣ ।
ଆଣ୍ଟିଲିଷ୍ଟ୍ ପାସ୍ କର ଘୋଷି ଘୋଷି ବି. ଏ.
ଡିଗ୍ରୀଧାରୀ, ମୂର୍ଖ ବୋଲି କହେ ଆଉ କଏ ?
ଦେଶହିତ ଲାଗି ଖାଅ, ଦେଶ ଲାଗି ଶୁଅ,
ଦେଶ ଲାଗି ଜନ୍ମ କର ଗଣ୍ଡା ଗୋଷ୍ଠି ପୁଅ ।
ଲେଡି ସ୍ୱାଧୀନତା ଦିଅ ଲେଡ଼ି ସ୍ୱାଧୀନତା,
ନୋହିଲେ ତୁଟିବ କାହିଁ ତୁମର ହୀନତା ।
ଛନ ମହଣ ତୁଳାରେ କର ଗୋଟା ଗଦ,
ଦୁଇ ଗଣ୍ଡା ଲମ୍ବ ଗୋଲ ତକିଆ ଦିଅ ଲଦ ।
ପଡ଼ି, ଗଡ଼ି, ଗୁଲି, ତରସ୍ ଦିଅ ଭଲ ଭିଡ଼ି,
ସ୍ୱଦେହେ ବୈକୁଣ୍ଠ ଯିବ, ଲାଗିଯିବ ଶିଡ଼ି ।
ଝୁଲି ଝୁଲି ଭାବୁଥାଅ ଦେଶହିତ କଥା,
ଅଥବା ଗୁଡ଼ାଖୁ ଖାଅ ତାଜା ଥିବ ମଥା ।

କାଲେ ଅବା ବୁଦ୍ଧି ଯଦ ଘଡ଼ିଯିବ କମ୍,
ସଙ୍ଗେ ସଙ୍ଗେ ବୁଦ୍ଧି ମୂଳେ ଦିଅ ଗଞ୍ଜା ଦମ୍ ।
ସବୁ ଦେଶହିତ ଲାଗି, କେହି ନୁହ ବାଦ,
ଦେଶ ଲାଗି ହସ, କାଶ, ଦେଶ ଲାଗି କାନ୍ଦ ।

ସ୍ତିରୀଏ ଏଥର ଏକ ସଭା ଦେବେ କରି,
ଭୋଟ ଦେଉଛନ୍ତି ସ୍ତିରୀ ଲକ୍ଷ ଦୁଇ ଗୁଣ ।
ଧର୍ମେ ସେ ବିଭା ନୋହିବେ କେବେ କାହାରିକି;
ପାସ୍ ନ କରିଲେ ଜ୍ୱାଇଁ ବି. ଏ. ସରିକି ।
ବୁଢ଼ା ଦିନଯାଏ ଯେବେ ବର ନ ମିଳିବ,
ମନ୍ଦ କିସ ? 'କୁମାରୀ' ଏ ଟାଇଟ୍ଲଟା ତ ଥିବ ।
ହରି ବୋଲ, ମାର ତାଳି ସଭା ମଉଳିଲା,
ପାଞ୍ଚହାତ ଉପରକୁ ଦେଶ ଉଠିଗଲା ।



ହିନ୍ଦୁ ହୋଇ ଠାକୁର-ଭୋଗ ନିନ୍ଦା ନ କରିବ,
ପୋକ ମାଛି ହୋଇ ସିନା ଜୀଅନ୍ତା ମରିବ ।
ଆମର ଠାକୁର ସବୁ କାଠ ବା ପଥର,
ନିନ୍ଦା ବସ୍ତୁ ମୂର୍ତ୍ତି ତଳେ ଫମ୍ପା ନାହିଁ ତାର ।
ଅମୁଣିଆରେ ପଡ଼ିଥିବ ଯେବେ ମଲା ମାଛି,
ତଳେ ଘୃଣା ନ କରିବ ଭୋଗ କରିବ ବାଛି ।
ମନଷ ଯା' ନ ଖାଇବ ଦେବତା କରେ ପାର,
ସେଥିଲାଗି ଆମ ଠାକୁର ନାମଟା "ଉଦାର" ।

ସ୍ୱାଗତଭୋଗ ମିଷ୍ଟାନ୍ନ ନାଲିଥି ଶୃଙ୍ଖଳ,
ବଡ଼ ଶ୍ରଦ୍ଧା ଠାକୁରଙ୍କର ବଢ଼େ ତନବେଳ ।
ଦେଶୀ ଗୁଅଘିଅର ଏବେ ବାସନା ଜମା ନାହିଁ,
ଟୀନ କଣ୍ଠା ଭର୍ତ୍ତି ଅସେ ଦୂର ଦେଶୁ ବହି ।
ଖଞ୍ଜାବାଡ଼ୀ ସୀମା ନାହିଁ ଠାକୁର ଉପାସ,
କାରପଟ୍ଦାର ବି ଖାଏ ନାହିଁ ଗ୍ରାଏଁ ଗ୍ରାଏଁ ନିକାଶ ।
ଠାକୁରଙ୍କୁ ଯେ ପଚ୍ଛ ମାରେ ତା'ର ବଢ଼େ ଘର,
ଠାକୁରଙ୍କ ନାମ ତେଣୁ 'କରୁଣାସାଗର' ।
ଲେଖାଅଛି ଦେଖିଛ ନା ଗାୟତ୍ରୀ—ବେଦରେ ?
"ସନ୍ତୁଷ୍ଟ ହେବ ନିତ ଘୃତ ଦ'ପଦରେ" ।
ଖେଚଡ଼ିରେ ମିଶିଥିବ ଲମ୍ବାଳ—ଭୋଗ,
ଚିଠା ବେଶି ଦେଲେ ଠାକୁରଙ୍କୁ ହେବ ରୋଗ ।
ଆମଠାକୁର ବଡ଼ ପେଟୁଆ ବଡ଼ ଟାଣ ଦାନ୍ତ,
ମସଲା ବୋଲି ଗ୍ରେବେଇବେ ଗୋଡ଼ ପର୍ଯ୍ୟନ୍ତ ।
ଦେଉଳେ ବି ବାଜିଲାଣି ହାଲ୍ ଫେସନ୍ ଗ୍ରେଟ,
ତା'ପରେ ଖୋଜା ହେବ ବିଡ଼ି, ସିଗାରେଟ ।
ମାହାରୀଙ୍କ ଘରପଖା ଅଧୁଆ କପଡ଼ା—
ନ ପିନ୍ଧି ଭୋଗ ବାଢ଼ିଲେ ଠାକୁର ହେବେ କଡ଼ା ।
ଜୟ ଜୟ ଦୀନବନ୍ଧୁ ଅପାର ମହିମା,
ତମକୁ ବି ଛୁଇଁଲାଣି କଳକାଳ ସୀମା ?
ବାକି କଅଁ ଥିବ ପ୍ରଭୁ ! ଖାନା, ବ'ଲନାଟି ?
ପଥର ଦେଉଳେ ରହି ପଥର ପାଲଟି ।



ପଢ଼ାବେଳେ ନାଉ ନିନ୍ଦା କରେ ଶିକ୍ଷକ,
ଧିକ ତାଙ୍କ ଜନମଟା, ଧିକ ଜନନୀକ ।
'ମୋଷ୍ଟ ଓବିଡ଼େଣ୍ଟ' କେତେ ଲେଖିବ ଦିନରେ !
କେତେ ଥପଡ଼ ଖାଇଦେଲେ ନ ଆସେ ମନରେ ।
ସ୍ୱାଧୀନ ବେଉସା କିଛି କରିଲେ କରିବ,
ନିତାନ୍ତ ପକ୍ଷରେ ଜଣେ 'କ୍ରିଟିସାଇଜର୍' ହେବ !

ସଭାରେ କହିବ ଯାଙ୍କି ଦୁଇ ଚାରି ପଦ,
ବରଷିବ ତାଳି ମାଡ଼ "ଧନ୍ୟରେ ସମ୍ପଦ" ।
ଏବେ ହେଲି ଧନହୀନ, ଦୁଃଖେ ଅଳସୁଆ,
ଉଠିଲା ବେଳକୁ ଲାଗେ ସଞ୍ଜଧୂପ ଧୂଆଁ ।
ପେଟ ତ ପୂରିଲା ନାହିଁ ଏତେ ମାନ କରି,
ଗୁଣ୍ଡା ତ କେ ପାନି ଜଳାରେ ଦେଲା ନାହିଁ ଭରି ।
ଖଞ୍ଜେ, ଖଞ୍ଜେ ଖୋଜି ନେବା 'ରେକମେଣ୍ଡେସନ',
ଦେଶ ଲାଗି ଶିକ୍ଷିତର ମୋର ଦଶଟଙ୍କା ବେତନ ।



କବି ହେବ ଲେଖିବ ନାହିଁ ନଭେଲ, ନାଟକ,
ଡ଼େଇଁବ ନାହିଁ କେବେ ଭାଇ ! ସାହିତ୍ୟଫାଟକ !
ଲେଖ ବସି 'କେଳାସୁଆଙ୍ଗ' 'ଗାଁ କନ୍ଦେଇ ଯୋଡ଼ି,'
ଏକାଦିନକେ ହଜାର କପି ଯିବ କାହୁଁ ଉଡ଼ି ।
ମୋ କଥାଟି ନ ମାନିଲେ କବିପଣ ଯିବ,
କଲମ କାମୁଡ଼ି ପେଟ ଭୋକରେ ମରିବ ।

ଦେହ ଥିଲେ ଚିନା ବାବୁ କହି ଦେବ ପଛେ,
ଭାବଭଙ୍ଗୀ ଗାଧୋଇ ଯିବ ମନ୍ତ୍ରବନ୍ତ ମିଛେ ।
ଥଟ୍ଟା ପଛେ ମଣ ମୋତେ ଦେଖି ଆସ ଯାଇ,
କେତେ ଖଣ୍ଡ ସାହିତ୍ୟ ପଢ଼େ ମୋ ଓଡ଼ିଆଭାଇ ?
ଧନ ନାହିଁ ଯାର ଦେଲେ ଲେମ୍ ଏକ୍ସକ୍ଲୁଜନ୍ ଢାର,
ଲକ୍ଷପତି ଓଡ଼ିଆର ଦେଖ କାରବାର ।
ଖବରକାଗଜ ଆସେ ଦୋଇ ଗଣ୍ଡା ଗୋଷ୍ଠ,
ଅଖୋଲା ପଡ଼ିଛି ହୁଏ ସେ ଲନ୍‌ଠନ୍ ପୋଷ୍ଟ ।
ଏ କଥାଟା ମିଛ ଯେବେ କହିବ ମୋହର,
କେ ନ ଜାଣେ ସତ କଥାଟା, କହି ମୁଁ ନା'ଗୁର ।



ମୋ ଚରିତ୍ର କୈଫିୟତ୍ ମୁଁ ନିଜେ ଦଏଁ ଶୁଣ,
ଗାଉଥାଏ ଗୁଣ ବସି ଖାଏ ଯାର ନୁଣ ।
ଲୋକେ ମୋତେ କହୁଥାନ୍ତି ବଡ଼ ଧପାଦାର,
ଯେ ଯେପର ତା'ସଙ୍ଗେ ମୋ ସେଇ ବ୍ୟବହାର ।
ଯେ ମୋତେ ଯହିଁକି କହେ ଶଠ ପ୍ରବଞ୍ଚକ,
ଭାବିବାକୁ କହେ ତାକୁ ଅଜ୍ଞ ମୁଁ ଏତକ ।
ନିଜେ ଯେ ବ୍ୟବହାରଟା ମୋ ପ୍ରଶ୍ନ କରନ୍ତି,
ଭିତର ପେଟ ତ ଆଉ କିଛି ନ ରଖନ୍ତି !
କାନେ ଶୁଣେ ହୁଣ୍ଡା ପର କରେ ନିଜ କାମ,
ଏଥିଲାଗି ଚିଡ଼ ମୋତେ ମୋ କରମ ବାମ ।

ପରିଶିଷ୍ଟ ଦେଖି ନ ପାଉ ଖୁଏଁ ଜଳ ମର,
ବାମୁଡ଼ ଅଙ୍ଗକୁ ଲାଗେ ଯେସନ ବାନର ।
ଖଣ୍ଡେ, ଖଣ୍ଡେ ଜାଣେଁ ସବୁ କହେ ଅନ୍ୟ ମତ,
ନ କଲେ ଏତେକ ଭଲା ଚଳିବ କେମନ୍ତ ?
ତମର ତମେ ଦଳ ବାନ୍ଧ ମୁଁ ତ ଏକା ଏକା,
ତମକୁ ସବୁ ପଦାରେ ରଖି ଖେଳେ ପଞ୍ଝା ଛକା ।
ତୁମେ ତୁମର ଚୁଗୁଲି କର ମନ୍ଦା ମଉଜରେ,
ମୋ କାନ କି ପଥର ଭାଇ ! ଏ ମନଷ ଜନମରେ ?
କହୁଥାଅ ତୁମେ ସବୁ ଫୁଙ୍କି ଦିଏଁ 'ଶଙ୍ଖ',
କି କରିବ ଭାଇ ଯେବେ ଭାଗ୍ୟଟି ସଲଖ ।
ମୋର ଲାଗି ତୁମ ତଣ୍ଟି ନ ଗିଲଇ ଗୁଣ୍ଡା,
ଦେଖେଁ, ହସେ, ଭାବ ନଥ ! କିଏ ଭଲ କିଏ ଗୁଣ୍ଡା ।



ଜଣେ ରଜା ମରଗଲେ ଯେ, ଦେଖିଛୁ ମୁଁ ଆଜି,
ଡ଼ରେ ନିଆଁ ଛୁଇଁଲ ନାହିଁ, ହେଲ ନାହିଁ ରାଜି ।
ବନ୍ଧୁ କଷ୍ଟରେ ଘିଅ ଢାଳିଲୁ ପୋଡ଼ିଲ ଶ୍ରୀଅଙ୍ଗ,
ପୋଡ଼ା ପାଉଁଶ 'ସୁନା' ହେଲ ଚୋଖା ହଳଦୀ ରଙ୍ଗ ।
ସାଇରୁ ଆମର ବନ୍ଧୁଆ ମଲ ବେଶ୍ ପୋଡ଼ିଗଲ,
ହାଡ଼, ମୁଣ୍ଡ, ଗଣ୍ଠି ତା'ର ଧୂଆଁ ପାଉଁଶ ହେଲ ।
ରଜା ପ୍ରଜା ମଲେ ମଧ ଫରକ ଥାଏ ଏତେ,
ଭଲଲୋକ ଏ କଥା ମୁଁ ଜାଣିବି କେମନ୍ତେ ?



ଚଢ଼ିଗଲ କି ଏତେ କଥା କହିଲି ମୁଁ ବୋଲି,
ଗରମ ହେଲେ ଦେବ ପଛେ ଚନ୍ଦନ ମୁଁ ଗୋଳି ।
ସଲାମ ଠୁଁକି ମୁଁ ନଇଁ ବଦାମ୍ଭ ଏଥର,
ପଛକୁନ୍ଦାଙ୍କ ଚରଣେ ମୋ କୋଟି ନମସ୍କାର ।
ଧନ ତ ମୋର ସରୁ କାହି ଏଇଟା କଲି କାର,
ବେଳେ ବେଳେ ସଭାରେ ଆସି ହେବି ମୁଁ ହାଜର ।
ଗୁଣ ଗ୍ରାମ ଗାଉଥିବ ଏହି ତ ମୋର ସାର,
ଝପକ ନବାବ୍ ହେବ, ଗ୍ରୃପଡ଼ ପଛେ ମାର ।
ଧୂଳିଅ ଜନ୍ମା ଥାଇ ବୋଲେ ମୁଁ ଭୂଇଁ ତଳେ ତଳେ ଥିବ,
ବଗଡ଼, କାଗଡ଼ ଦେଖିଲେ ମୋର ଅଭ୍ୟାସ ଲାଗିବ ।
ମୁଣ୍ଡରେ ମୋର ଗୋଇଠା ଦେଲେ ଶ୍ରେଠେ କାମୁଡ଼ିବ,
ଆପେ ନ ମଲେ କି କେବେ ପ୍ରକୃତ ଶୁଝିବ ?

ସମ୍ପୂର୍ଣ୍ଣ ।



Printed by V. Kar The Utkal Sahitya Press, Cuttack.

# ବିଜ୍ଞାପ

ଶ୍ରୀ କାଳୀଚରଣ ପଟ୍ଟନାୟକଙ୍କ-
ପ୍ରଣୀତ—

୧ । କଳାହାଣ୍ଡିଆ ମେଘ । (ସୁନ୍ଦର ଶିଶୁପାଠ୍ୟ କବିତା) ଟ ୦ /୬

୨ । କରଣ ଡାଲି ।
(ନବୀନ ରାଗ ରାଗିଣୀ ସମ୍ବଳିତ
ଗମ୍ଭୀର ଭାବପୂର୍ଣ୍ଣ ସଙ୍ଗୀତ ଗୁଚ୍ଛ)— ଟ ୦ /୬

୩ । ବାୟାଧନ୍ଧା ( ୨ୟ ମୁଦ୍ରଣ )
(ଉପଦେଶାତ୍ମକ ଶିଶୁପାଠ୍ୟ କବିତାବଳୀ ।
ପାଠକଲେ ଆବାଳବୃଦ୍ଧବନିତା ମୁଗ୍ଧହେବେ ଟ ୦ /

୪-ଧ୍ରୁବ ନାଟକ
(ସହଜରେ ଅଭିନୀତ ହୋଇପାରିବ
ଭାଷା, ଭାବ, ସଙ୍ଗୀତ—ସମସ୍ତହିଁ
ମନୋହର । ଉତ୍କଳରେ ନୂତନ ପୁସ୍ତକ ।
ପଢନ୍ତୁ, ମୁଗ୍ଧ ହେଉନ୍ତୁ । ) ଟ ୦ ।/

ପ୍ରାପ୍ତିସ୍ଥାନ ଃ—

ପ୍ରିଣ୍ଟିଂ କୋମ୍ପାନୀ-ଦରଘାବଜାର କଟକ
ଚନ୍ଦ୍ରୋଦୟ ପ୍ରେସ୍, ବାଲୁବଜାର ପୋଃ ଅଃ ଚାନ୍ଦନୀଚୌକ କଟକ
ଅରୁଣୋଦୟ ପ୍ରେସ୍-ବାଲୁବଜାର „
ଦତ୍ତପ୍ରେସ୍ „ „
ସୁଧାକୃଷ୍ଣବସୁ । ମାଣିକଘୋଷ ବଜାର „
ଟ୍ରେଡିଂ କୋମ୍ପାନୀ-ବାଲୁବଜାର „
ଉତ୍କଳ ନାସନାଲ ଷ୍ଟୋର, ଚଉଧୁରୀବଜାର କଟକ ।

—*O*—

